ISSN: 2456-9194, Vol. I, Issue. II, Sept-2017


# ପ୍ରତ୍ୟୟ

(Journal of Odia Language, Culture and Science)


# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ନୈରାଶ୍ୟବାଦୀ ଚିନ୍ତାର ସ୍ୱର


ତନ୍ମୟୀ ରଥ

ଗବେଷିକା, ସ୍ନାତକୋତ୍ତର ଓଡ଼ିଆ ବିଭାଗ,

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର – ୭୫୧୦୦୪

E-mail : maatarini966@gmail.com



***ସଂକ୍ଷିପ୍ତ ପରିଚୟ*** - *ପାଶ୍ଚାତ୍ୟ ସାହିତ୍ୟରେ ନୈରାଶ୍ୟବାଦୀ ଚିନ୍ତାଧାରା ଆମ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାକୁ ଯେତେ ପ୍ରଭାବିତ କରିଛି, ତଦନୁସାରେ ଏ ସମ୍ବନ୍ଧିତ ଆମର ଆଲୋଚନା ଏବେବି ଅପେକ୍ଷାକୃତ କମ୍ ମନେହୁଏ । ପାଶ୍ଚାତ୍ୟ କବି Arnoldଙ୍କ ମତରେ "Pessimistic or otherwise, is the theme that man must live, life as well as he can; he must endure." ଓଡ଼ିଆ ସାହିତ୍ୟରେ ଏହି ନୈରାଶ୍ୟବାଦୀ ଚିନ୍ତାଧାରା ସମାଜ ଓ ଜୀବନର ବିଭିନ୍ନ ଘଟଣା ଯେପରି ବିଶ୍ୱଯୁଦ୍ଧର ଘନଘଟା, ଆର୍ଥନୀତିକ ଦୁଃସ୍ଥିତି ଓ ରାଜନୈତିକ ପ୍ରତାରଣା ମାଧ୍ୟମରେ ପ୍ରତିଫଳିତ ହୁଏ । ଆଲୋଚ୍ୟ ନିବନ୍ଧରେ ମୁଁ କେତେଜଣ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିଙ୍କର କବିତାକୁ ଆଲୋଚନାର ପରିସର କରିଥିଲେ ହେଁ ଏ ସମ୍ବନ୍ଧିତ ଆଲୋଚକଙ୍କ ବିଭିନ୍ନ ମତାମତକୁ ଯଥାର୍ଥ ଭାବରେ ଏହି ପ୍ରବନ୍ଧରେ ସ୍ଥାନ ଦେବାକୁ ପ୍ରୟାସ କରିଛି । ଆଲୋଚ୍ୟ ପ୍ରବନ୍ଧରେ ସଚ୍ଚିରାଉତଙ୍କ 'ସ୍ୱଗତ', ଗୁରୁପ୍ରସାଦ ମହାନ୍ତିଙ୍କ 'ସମୁଦ୍ର ସ୍ନାନ', ରମାକାନ୍ତ ରଥଙ୍କ 'କେତେ ଦିନର', ବେଣୁଧର ରାଉତଙ୍କ 'ପିଙ୍ଗଳରା ସୂର୍ଯ୍ୟ'କୁ ଆଲୋଚନା ପରିସରରେ ଅନ୍ତର୍ଭୁକ୍ତ କରି ସ୍ୱାଧୀନତା ପରବର୍ତ୍ତୀ ନୈରାଶ୍ୟର ଚିତ୍ରକୁ ଉପସ୍ଥାପନ କରାଯାଇଛି ।*



***ପ୍ରମୁଖ ଶବ୍ଦାବଳୀ*** *(Keywords)* - *ନୈରାଶ୍ୟବୋଧ*, ଓଡ଼ିଆ କବିତା, ବିଶ୍ୱଯୁଦ୍ଧ, ସାମାଜିକ ବିପର୍ଯ୍ୟୟ


ନୈରାଶ୍ୟବାଦୀ ଚିନ୍ତାଧାରା ସଂପୂର୍ଣ୍ଣ ଯେ ଆଧୁନିକ ଯୁଗର ଚିନ୍ତା ତାହା ନୁହେଁ, ସବୁ ଯୁଗରେ ମଣିଷ ଭିତରେ ନାନା କାରଣରୁ ନୈରାଶ୍ୟ ଆସିଅଛି । ତେବେ ଆଧୁନିକ ଯୁଗରେ ବିଶେଷତଃ ବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରୁ ଯେପରି ବିଶ୍ୱବ୍ୟାପୀ ମଣିଷମାନଙ୍କ ଭିତରେ ନୈରାଶ୍ୟ ଦେଖାଦେଇଛି, ତାହା ଅତୀତ କାଳରେ ନ ଥିଲା । ଏ ସମୟରେ ମଣିଷ ତାର ଜୀବନ ସଂପର୍କରେ ଅନିଶ୍ଚିତ ହୋଇପଡ଼ିଛି । ବିଶ୍ୱଯୁଦ୍ଧର ଘନଘଟା, ଆର୍ଥନୀତିକ ଦୁଃସ୍ଥିତି, ରାଜନୀତିକ ପ୍ରତାରଣା ଇତ୍ୟାଦି ଫଳରେ ମଣିଷମାନେ କ୍ରମଶଃ ଅସହାୟତା ଅନୁଭବ କରଉଛନ୍ତି । ବଞ୍ଚିବାରେ ଅସହାୟତା, ମୂଲ୍ୟବୋଧର ଅସହାୟତା ଦେଖାଦେଇଛି । ଡି.ଏଚ୍. ଲରେନ୍ସ (D.H. Lawrence) ତାଙ୍କର 'Kangaroo' (ପ୍ରଥମ ପ୍ରକାଶନ ୧୯୨୩ ଅଷ୍ଟ୍ରେଲିଆ) ଉପନ୍ୟାସରେ ଠାଏ ଉଲ୍ଲେଖ କରିଥିଲେ ଯେ - ୧୯୧୫ ମସିହାବେଳକୁ ପୁରାତନ ବିଶ୍ୱର ଅବସାନ ଘଟିଗଲା । ପୁରାତନ ଲଣ୍ଡନ ସହର ମଧ୍ୟ ସଙ୍କୁଚିତ ହୋଇଗଲା । ସବୁଜ ପରି ଧ୍ୱଂସ ହୋଇଗଲା । ମଣିଷର ଆବେଗ, କାମତୃଷ୍ଣା, ଆଶା, ଭୟ ଓ ଆତଙ୍କ ପ୍ରସାରିତ ହେଲା । ପ୍ରଥମ ବିଶ୍ୱଯୁଦ୍ଧ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ବିଶ୍ୱବ୍ୟାପୀ ମଣିଷମାନେ ଏପରି ପରିସ୍ଥିତିର ସମ୍ମୁଖୀନ ହେଲେ ଯାହା ସେମାନଙ୍କ ଭିତରେ ସୃଷ୍ଟି କଲା ନୈରାଶ୍ୟ । ଏକ ପକ୍ଷରେ ଜାତୀୟ ଜୀବନରେ ନୈରାଶ୍ୟ ଯେପରି ଦେଖାଗଲା, ସେହିପରି ବ୍ୟକ୍ତି ଜୀବନରେ ମଧ୍ୟ ସୃଷ୍ଟି ହେଲା ନୈରାଶ୍ୟ । ନୈରାଶ୍ୟ ଫଳରେ ବ୍ୟକ୍ତି ନିଜକୁ ଅସହାୟ ମନେକଲା । ତା' ଭିତରେ ପ୍ରକାଶ ପାଇଲା ମୃତ୍ୟୁବୋଧ । ଅତୀତର ଆଧ୍ୟାତ୍ମିକ ମୂଲ୍ୟବୋଧ ଲୋପ ପାଇଗଲା । ଅନ୍ୟ ପକ୍ଷରେ ଗୋଟାଏ ଉଦଗ୍ରବସ୍ତୁ ଲାଳସା ଓ ଉପଭୋଗ ତୃଷ୍ଣା ପ୍ରାୟ ମଣିଷମାନଙ୍କୁ ଆକ୍ରାନ୍ତ କରିଦେଲା । କିନ୍ତୁ, ମଣିଷ ଯାହା ଚାହିଁଲା ତାହା ନ ପାଇବାରୁ ତା' ଭିତରେ ନୈରାଶ୍ୟ ସୃଷ୍ଟି ହେଲା । ବ୍ୟକ୍ତି ଜୀବନର ନୈରାଶ୍ୟ ହିଁ ତାକୁ କ୍ରମେ ନୈରାଶ୍ୟର କାରଣ ଅନୁସନ୍ଧାନ ପାଇଁ ସଚେତନ କଲା । ଏଇ ଅନୁସନ୍ଧାନ ଭିତରେ ଯେତେବେଳେ ସେ ତା'ର ଲକ୍ଷ୍ୟକୁ ପୂରଣ କରିପାରିଲା ନାହିଁ,

ସେତେବେଳେ ସେ ଆହୁରି ଅସହାୟ ହୋଇଉଠିଲା । ସମଗ୍ର ସାମାଜିକ ଜୀବନରେ ନୈରାଶ୍ୟର ଛାୟା ଖେଳିଗଲା । ସାମାଜିକ ଜୀବନରେ ନୈରାଶ୍ୟ ସୃଷ୍ଟି ହେବା ସହ ମଣିଷର ବୌଦ୍ଧିକ ଜୀବନରେ ମଧ୍ୟ ନୈରାଶ୍ୟ ସୃଷ୍ଟି ହେଲା । ଏଇ ନୈରାଶ୍ୟ ବୋଧକୁ ନେଇ କବିମାନେ ଏକାନ୍ତ ଭାବରେ ଆତ୍ମମଗ୍ନ ହୋଇଉଠିଲେ । ଆତ୍ମମଗ୍ନତା ଭିତରେ ସେମାନେ ପ୍ରତ୍ୟହ ଜୀବନ ବଞ୍ଚୁଥିବା ମଣିଷମାନଙ୍କର ଦୁଃଖ, ଦୈନ୍ୟ ଓ ଅସହାୟତାର କାରଣକୁ ଖୋଜିବସିଲେ । ଏହାଦ୍ୱାରା ସେମାନେ ଯେଉଁ କବିତା ରଚନା କଲେ ସେଥିରେ ନୈରାଶ୍ୟବାଦୀ ଚିନ୍ତାଧାରା ପ୍ରମୁଖ ହୋଇଉଠିଲା । କବି ନିଜକୁ ଖୋଜିଲା (search for self) । ନିଜକୁ ଖୋଜୁ ଖୋଜୁ ତା' ଭିତରେ ନୈରାଶ୍ୟଭାବ ଏପରି ଶାଣିତ ହୋଇଉଠିଲା ଯେ ତାହାର କବିତାଗୁଡ଼ିକରେ ସେଇ ଚିନ୍ତା ପ୍ରକାଶ ପାଇଲା।

ସଂପ୍ରତି ଦେଖାଦେଇଛି ସମାଜରେ ସଂକଟ, ସଂସ୍କୃତିରେ ସଂକଟ, ଜୀବନ ବଞ୍ଚିବାରେ ମଧ୍ୟ ସଂକଟ । ଏଇ ସଂକଟ ଚେତନା ଯେତିକି ଯେତିକି ତା' ଭିତରେ ଶାଣିତ ହୋଇଉଠୁଛି, ସେତିକି ସେତିକି କବିଟି ନୈରାଶ୍ୟ ଦଗ୍ଧ ହୋଇଯାଉଅଛି । T.S. Eliot (୧୯୦୫-୧୯୬୫) ଏଇ ନୈରାଶ୍ୟଭାବକୁ ତାଙ୍କର 'The Waste Land' (୧୯୨୨) କବିତା ପୁସ୍ତକରେ ସୂଚାଇ ଦେଇଛନ୍ତି ।

ପରବର୍ତ୍ତୀ କାଳରେ ସମଗ୍ର ପୃଥିବୀରେ ବହୁ କବି ନୈରାଶ୍ୟର କଥା ଉଚ୍ଚାରଣ କରିଛନ୍ତି । ଆମ ଓଡ଼ିଆ କବିତାରେ ସଚ୍ଚିରାଉତଙ୍କଠାରୁ ଆରମ୍ଭ କରି ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଆଦି ପ୍ରମୁଖ କବିମାନେ କବିତାରେ ନୈରାଶ୍ୟର ବାଣୀ ଉଚ୍ଚାରଣ କରିଥିବାର ଜଣାଯାଏ ।

ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରେ ମଣିଷର ସ୍ଥିତି ଓ କର୍ତ୍ତୃତ୍ୱ ବଡ଼ ତୁଚ୍ଛ ଓ ଅକିଞ୍ଚନ ମନେହୁଏ । ଉଦ୍ଭଟତା, ନୈରାଶ୍ୟ ଓ ବିଫଳତା ହିଁ ତା ଜୀବନର ସ୍ୱର । ତେଣୁ, ଏଭଳି ବିଚ୍ଛିନ୍ନ, ବିମର୍ଷପଣର ହତାଶପଣ, ଆଧ୍ୟାତ୍ମିକ ଆତ୍ମକଥା ହିଁ ଆଧୁନିକ କବିତାର ଅନ୍ତଃସ୍ୱର ପାଲଟିଛି । କବି ସଚ୍ଚି ରାଉତରାୟ ସାଂପ୍ରତିକ ମଣିଷର ଜୀବନ, ଯନ୍ତ୍ରଣା ଓ ଅସହାୟତାକୁ ବୃହନ୍ନଳା, ପାଞ୍ଚାଳୀ, ଶକୁନି, ତ୍ରିଶଙ୍କୁ ପରି ପୌରାଣିକ ଚରିତ୍ର ଓ କଥାବସ୍ତୁ ଭିତରେ ପ୍ରକାଶ କରିଛନ୍ତି । ସାମାଜିକ ସଂଘର୍ଷରେ ଏକ ପରାସ୍ତନାୟକ ପରି ଆଧୁନିକ ମଣିଷର ଅବସ୍ଥା । ସେ ଆଜି ଯନ୍ତ୍ରସଭ୍ୟତାର ପୀଡ଼ିତ ବ୍ୟକ୍ତି । ତା'ର ଭଗ୍ନଜାନୁ ଘଟିଛି । ମହାଭାରତରେ ଜାନୁଭଙ୍ଗ ହୋଇଥିଲା ଦୁର୍ଯ୍ୟୋଧନଙ୍କର । ରାଉତରାୟଙ୍କ କବିତାରେ ଆଧୁନିକ ମଣିଷର ହିଁ ଭଗ୍ନଜାନୁ ଘଟିଛି । ତା' ଜୀବନର ସ୍ୱାଭାବିକ ଅବସ୍ଥାକୁ ସୂଚେଇ କବି କହିଛନ୍ତି –

"ତେଣୁ ମୁଁ ତ ଭଗ୍ନଜାନୁ
ଖସିପଡ଼େ ମୋର ରାଇଫଲ
ଉଠାଇପାରେନା ଆଉ ଗାଣ୍ଡିବ ଯେ
ହାତ ଥରଥର ।"(୧)

(ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ, ସ୍ୱଗତ, ପୃ.୧୨୩୦)

ଜୀବନ ଆଜି ମୃତ୍ୟୁ ଯନ୍ତ୍ରଣାରେ କାତର । ଯନ୍ତ୍ର ସଭ୍ୟତା ଛଡ଼ାଇ ନେଇଛି ଜୀବନର ଯେତେ କୋମଳ ଅସ୍ପୃହା । ଏଇ ଆଧୁନିକ ମଣିଷର ପ୍ରତୀକ ଅର୍ଜ୍ଜୁନ ପାଇଁ ଗାଣ୍ଡୀବ ଧାରଣ ଏକ ବିଷମ ସମସ୍ୟା । ତେଣୁ ସେ ଗାଣ୍ଡୀବ ଅଥବା ରାଇଫଲ୍ ଧାରଣ କରିପାରେ ନାହିଁ ।

ସେହିପରି ଆଉ ଏକ ଚରିତ୍ର ପ୍ରତିମା ନାୟକ, ଯିଏ ଉଚ୍ଚଶିକ୍ଷିତା ହୋଇଥିଲେ ବି ଅସହାୟତା, ନୈରାଶ୍ୟରୁ ବଞ୍ଚିପାରିନାହିଁ । ତେଣୁ ଯୁଦ୍ଧୋତ୍ତର ପୃଥିବୀରେ ନାରୀର ସଂଘର୍ଷପୂର୍ଣ୍ଣ ଜୀବନର ସେ ହେଉଛି ଏକ ମାର୍ମିକ ଅଭିବ୍ୟକ୍ତି । ଜରାଜୀର୍ଣ୍ଣ ତନୁରେ ତା'ର ଉକୁଟି ଉଠୁଛି ବ୍ରଣ । ଆଉ ତା'ର ମୁଖଶ୍ରୀ ଯେପରି ମ୍ଳାନ । ତା' ଜୀବନରେ ଦେଖାଦେଇଛି ସକଳ ବ୍ୟର୍ଥତା । ତା'ର ବି ଘଟିଛି ପିତୃହାନୀ, ଋଣଭାର, ଗୃହଭେଦ, ପୁଣି ବାହାଘର ଭାଙ୍ଗିଯିବା, ସତେଯେପରି ତା'ର ଜୀବନ ବିଶ୍ୱ ହେଇପଡ଼ିଚି ବିଷଣ୍ଣ । ଏହି ଆର୍ଥନୀତିକ ଦୂରବସ୍ଥା ପାଇଁ ପାଠପଢ଼ା ବନ୍ଦ ହୋଇଯିବାଟା ହିଁ ତା' ଜୀବନର ସକଳ ବ୍ୟର୍ଥତାର ସୂଚନା ଦିଏ । ଏହାହିଁ ତା'ର ବିଷାଦବୋଧ, ନୈରାଶ୍ୟକୁ ସୂଚେଇଦିଏ । କବିଙ୍କ ଭାଷାରେ –

"ମୁଖ ତାର ବ୍ରଣ ଦୁଷ୍ଟ ହାତରେ ତା ଚମଡ଼ାର ବ୍ୟାଗ୍
ଶୀର୍ଣ୍ଣ ସାଧାଗାଲେ ଫୁଟେ ବ୍ୟର୍ଥତାର ଅକପଟ ଦାଗ
ତନୁ ତାର ରୋଗଜୀର୍ଣ୍ଣ, ବ୍ରଣେତାର ସ୍ଥାନ ମ୍ଳାନ ମୁହଁଯାକ
ଶ୍ଳଥ, ରକ୍ଷ ଦେହ-ଶିଖା ଢାଙ୍କିଅଛି ଖାକିର ପୋଷାକ ।"(୨)

(ପ୍ରତିମା ନାୟକ, ପୃ.୧୦୨୪)

ବର୍ତ୍ତମାନ ସମୟ ହୋଇପଡ଼ିଛି ଯନ୍ତ୍ରଣାକ୍ତ । ଏ ସମୟ ମଣିଷର ଅନ୍ତରରେ ଭରି ଦେଇଛି ନୈରାଶ୍ୟ ଓ ଗ୍ଳାନ । ପୁଣି ଏ ସମୟ ପୁରିରହିଛି ସନ୍ଦେହ ଓ ଈର୍ଷାରେ । ଜୀବନ ହୋଇଛି ଦୀର୍ଘନିଶ୍ୱାସମୟ, ଜଟିଳ ଓ ଜ୍ୱାଳାମୟ । ଆଜିର କବି ସମୟ ପ୍ରତି ଗଭୀର ଭାବରେ ସଚେତନଶୀଳ । ଆଦର୍ଶ ଓ ନୀତିର ତାଡ଼ନାରେ ସେ ବାସ୍ତବତାକୁ ଉପେକ୍ଷା କରେ ନାହିଁ । ତା'ର ସମ୍ବେଦନଶୀଳ ଅନ୍ତରାତ୍ମା ସମୟର ଅନ୍ତର୍ନିହିତ ସ୍ୱରୂପ ସହିତ ଏକାତ୍ମ ହୋଇଉଠେ । ଆଧୁନିକ ଜୀବନର ଘଟାନ୍ତରିତ କାରୁଣ୍ୟ ଓ ସମୟର ଯନ୍ତ୍ରଣାବୋଧର ଚିତ୍ରକୁ କବି ହରେକୃଷ୍ଣ ଦାସ ଭିତରେ ବର୍ଣ୍ଣନା କରିଛନ୍ତି । ଜୀବନର ଅସାରତା ଭିତରେ ସେ ଆଜି ବଞ୍ଚିବାକୁ ପ୍ରୟାସ କରୁଛି । ସେହି ବ୍ୟକ୍ତିସତ୍ତାର ବିଭଙ୍ଗ, ବିପର୍ଯ୍ୟସ୍ତ ଓ ବିପନ୍ନ ସ୍ଥିତିକୁ କବି ସୂଚେଇଛନ୍ତି –

"ଭୟ ଆଉ ପାପ ମିଶି ଏ ସମୟ ଅନ୍ତଃସତ୍ତ୍ୱା...ଜୀବନର ଭଗ୍ନାଂଶ କେବଳ ତେଣୁ ଏହି ସହରର ଗଳିରେ ଛିନ୍ନ ପ୍ରାଣହୀନ ଦେହ ଓ କାମନା । ତେଣୁ ଏହି ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ ଉଲର୍ ପୋଷାକ ଭିତରେ ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ ଅଭିଶପ୍ତ

ମଣିଷର ପାପ ଆଉ ଭୟର ପ୍ରେତାତ୍ମା ।"(୩) (ହରେକୃଷ୍ଣ ଦାସ, ପୃ.୩୧)

ଏହି ବିଶ୍ୱଯୁଦ୍ଧ ଓ ସ୍ୱାଧୀନତାପ୍ରାପ୍ତି ପରେ ସାରାବିଶ୍ୱରେ ଯେଉଁ ପୂର୍ଣ୍ଣତା, ବୀଭତ୍ସତା ଓ ବିସଙ୍ଗତି ଖେଳିଯାଇଚି । ତାହା କବିଙ୍କ ମାନସପଟରେ ଆଙ୍କି ଦେଇଛି ବିଷାଦରଗାର । ସେଥିରୁ ମୁକ୍ତି ହେବା ଅସମ୍ଭବ । ଜୀବନ ହୋଇଛି ଜୀବନ୍ତ ମରଣ । ଅସ୍ତିତ୍ୱ ପ୍ରାୟ ନିରର୍ଥକ ଓ ସ୍ୱପ୍ନ ବି ସମ୍ଭାବନାହୀନ । କବିତାର ଜୀବନବୋଧ ତେଣୁ କ୍ଳାନ୍ତି, ବିତୃଷ୍ଣା ଓ ନୈରାଶ୍ୟରେ ପରିପୂର୍ଣ୍ଣ । ଏଠି କାବ୍ୟନାୟକ ଜାଣେ ଯେ ଜୀବନ ତା'ର ବିଫଳ, ନିରର୍ଥକ । ତେଣୁ ସେ ସାମାଜିକ ବିଷମତା ପ୍ରତି ବ୍ୟଙ୍ଗ ନ କରି ନିଜର ଦୁର୍ବଳତା, ମୂଢ଼ତା ଓ ଅସହାୟତାକୁ ବ୍ୟଙ୍ଗ କରିବସେ । ଏପରିକି ନିଜକୁ ଦେଖି ନିଜେ ହସେ । ନିଜକୁ ନାଟର ନାୟକ ନ ଭାବି ଦୂତ ରୂପେ ଦେଖେ । ତା'ର ଜୀବନ ପ୍ରତି ଥିବା ଏଭଳି ମନୋଭାବ ଯାହା ଉଦ୍ଭଟ ମାନସିକତାକୁ ସୂଚାଏ ।

"ମୁଁ ନୁହେଁ ଧୂପର ହିରୋ, ଗାର୍ଲସ୍କୁଲ,
ଚୁମ୍ବନ ବା ଚମ୍ପୂର ନାୟକ
ଚାରୁକଳା ଅଭାବ ମୋଠାରେ
ତାର ସିଲ୍କି ଲୁଗାତଳୁ ଗୋଲ ଛାତି ଯେବେ ଉଙ୍କିମାରେ ।
× × × ×
ନାଟର ଦୂତ ମୁଁ ମୋର ନିଶ ମୋଡ଼ି ମୋଡ଼ି
ଧରି ଢୋକ ଗିଳିଗିଳି
ଆଣିଦେବା ରାଜ୍ୟର ଖବର ।"(୪)
(ଗୋବର ଗଣେଶ, ପୃ.୫)

ବାସ୍ତବିକ କହିବାକୁ ଗଲେ ଏ ସମୟ ହିଁ ମଣିଷକୁ କରିଛି ନିଃସଙ୍ଗ । ଏହି ନିଃସଙ୍ଗ ବ୍ୟକ୍ତିସତ୍ତା ଅନ୍ତର ମଧ୍ୟରେ ଉପଲବ୍ଧି କରୁଛି ଏକାକୀତ୍ୱବୋଧ । ସେ କେଉଁଠାରେ ଶାନ୍ତି ପାଇପାରେ ନାହିଁ । ବରଂ ସବୁ ମଧ୍ୟରେ କିଛି ନାହିଁର ବିକଳ ବିମୂର୍ତ୍ତଭାବ ସତେ ଯେପରି ତା'ର ହୃଦୟକୁ କରିଛି ବେଦନାର୍ତ୍ତ । ଆଜିର ମଣିଷ ଏହି ଅନନ୍ତ ସମୟର ଉପକୂଳରେ ଏକାକୀ ଦଣ୍ଡାୟମାନ । ତେଣୁ କବି ରମାକାନ୍ତ ରଥ ଯଥାର୍ଥରେ ଲେଖିଛନ୍ତି –

"ମୁଁ ଏଠାରେ ବିଲ୍‌କୁଲ୍ ଏକାକୀ ଠିଆ,
ମୋ ବ୍ୟତୀତ ସଭିଙ୍କୁ ଅଦୃଶ୍ୟ / ଏହାହିଁ ସମୟ
ଅଳ୍ପ ହସ / ଭୁଲତାକୁ ଟେକି ଆଖି
ବିସ୍ଫାରିତ କରି ନିର୍ଦ୍ଦିଷ୍ଟ ଭାବରେ ଚାହିଁ ତା' ମୁହଁକୁ
ବଢ଼ାଅ ଡାହାଣ ହାତ ଓ ତା'ର ହାତକୁ ଧର
ତା' ପରେ ନିଶ୍ଚିହ୍ନ ହୁଅ ତା' ଭିତରେ ।"(୫)
(ସନ୍ଦିଗ୍ଧ ମୃଗୟା, ପୃ.୪୧)

ତେଣୁ ସମୟର କୂଳରେ ଆଜିର ମଣିଷ ଏକାକୀ ଠିଆହୋଇ ଜୀବନର ଅସହାୟତାକୁ ଓ କ୍ଷଣଭଙ୍ଗୁରତାକୁ ଉପଲବ୍ଧି କରୁଛି ।

'ମରୁପଥର ସ୍ୱରଲିପି'ରେ କବିଙ୍କ କାବ୍ୟାନୁଭୂତି ସେହିପରି ନୈରାଶ୍ୟ, ବ୍ୟର୍ଥତା, ନିଃସଙ୍ଗତା ଓ ମୃତ୍ୟୁଚେତନାକୁ ନେଇ ମୁଖ୍ୟତଃ ଛନ୍ଦି ହୋଇରହିଛି । ଅତୃପ୍ତିର ପ୍ରେତ, ଶୂନ୍ୟତାର ଜଙ୍ଗଲ ଆଦି ଶବ୍ଦ ଭିତରେ ଏ ଭାବନା ଅଧିକ ଘନ ଓ ପରିତୃପ୍ତ । ଜୀବନର ଯନ୍ତ୍ରଣା ଓ ଜଞ୍ଜାଳ ମଧ୍ୟରେ ଆତ୍ମାର ଯାତ୍ରା କବିତାର ମୂଳକଥା; କିନ୍ତୁ ଯାତ୍ରାର ପରିଣତି ଯେ ଆନନ୍ଦଦାୟକ ତା' ନୁହେଁ, ପରିଣତିରେ ବି ସମାନ ଯନ୍ତ୍ରଣା ଓ ଜଞ୍ଜାଳ ଜଡ଼ିତ ।

"ଆଜି ହାୟ ସମୁଦ୍ରର ସତ୍ତା ନାହିଁ
ଚଉଦିଗେ ବାଲି ଆଉ ବାଲି
ଘନ କୁହୁଡ଼ିର ଅନ୍ଧାର; କଣ୍ଟାବୁଦା
ସମସ୍ତ ଯାତ୍ରାର ଶେଷ ଆପଣା ସ୍ଥିତିରେ
ସବୁ ଗତିପଥ ମିଶେ କେନ୍ଦ୍ରବିନ୍ଦୁ ନିଜ ଶୂନ୍ୟତାରେ ।"(୬)
(ଅଷ୍ଟପଦୀ, ପୃ.୧୯୯)

ଆଧୁନିକ ମଣିଷର ସମସ୍ୟାକେନ୍ଦ୍ରିକ ଜୀବନର ଅସହାୟତା, ସ୍ୱପ୍ନଭଙ୍ଗ, ଅନିଶ୍ଚିତତା ସଂପର୍କରେ ସ୍ୱଷ୍ଟଚିତ୍ର ଦେଖିବାକୁ ମିଳେ କବି ସୌଭାଗ୍ୟ ମିଶ୍ରଙ୍କ କବିତାରେ । ତାଙ୍କ ସାମ୍ନାରେ ଜୀବନ ବଡ଼ ନିରାଶ୍ରୟ ଓ ଅନିଶ୍ଚିତ । ସମୟର ଦଗାବାଜି ପ୍ରତ୍ୟେକ ସ୍ୱପ୍ନକୁ, ସମ୍ଭାବନାକୁ ଧୂଳିସାତ୍ କରୁଛି । ମନୁଷ୍ୟକୁ ତା'ର ପ୍ରବୃତ୍ତି ପତନର ପଥ ଆଡ଼କୁ ଟାଣି ନେଇଯାଉଛି । ତା' ପାଇଁ ପାପପୁଣ୍ୟର ଅର୍ଥ ଭିନ୍ନ ପାଲଟିଛି । ଜୀବନର ସଂଜ୍ଞା ମଧ୍ୟ ବିଭିନ୍ନ । 'ଶୁକଦେବ ଜେନା'ରେ ପାପଗ୍ରସ୍ତ ନାୟକର ସଂସାରକାମୀ ମନ ତାକୁ ଦଗ୍ଧ କରୁଛି । ପ୍ରତି ମୁହୂର୍ତ୍ତରେ ଜୀବନ୍ତ ମରଣକୁ ସାମ୍ନା କରୁଥିବା ମଣିଷ ପାଇଁ ଏକ ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି, ବିଶ୍ୱାସପୂର୍ଣ୍ଣ ଆଦର୍ଶ ପ୍ରତି ଆସ୍ଥା ନାହିଁ । ମୃତ୍ୟୁର ଭୂମିକା ବି ଏଠାରେ ଗୌଣ । କାବ୍ୟନାୟକର ଶଙ୍କିତ ସ୍ୱର ଏହିପରି –

"କେବେ ସେ ଆସିବେ କ୍ରୁଦ୍ଧ ସନ୍ନ୍ୟାସୀ ଓ ମୋ ଖଟ ସାମ୍ନାରେ
ତାଙ୍କର କଠଉ ଶବ୍ଦ ବନ୍ଦ ହେବ ଅଧଘଣ୍ଟା ପାଇଁ
ଏକ ହାତେ କମଣ୍ଡଳୁ ଆନହାତେ ଦଣ୍ଡ ।
ମୋ ରୁଧିର ସମୁଦ୍ର କ୍ଷୀରାବ୍ଧି ହେବ
ଆଉ ପୁଣି କେଉଁ ସ୍ୱୀକୃତିରେ
ପୁଣିଥରେ ବିସର୍ଜନ? ଆଉଥରେ ସେ କେଉଁ ଡାକ୍ତରଖାନା
ଆଉ ପୁଣି କେଉଁ ମୁକ୍ତି? ଆଉ କେଉଁ ଶୁକଦେବ ଜେନା ।"(୭)
(ମଧ୍ୟପଦଲୋପୀ, ପୃ.୧୦୯)

ସେହିପରି 'ନଈପହଁରା'ର କାବ୍ୟନାୟକ ଉପଲବ୍ଧି କରିଛି ଯେ ସେ ବଞ୍ଚôଚେବା ମାନେ ଜୀବନ ନଈ ପହଁରିବା । ଜୀବନ ଯେଉଁଠି

ନୀରର୍ଥକ, ସେଠାରେ ପହଁରିବା ଅର୍ଥ ନାହିଁ? ମଣିଷ ମାତ୍ରେ ଜନ୍ମକାଳରୁ ନିଜର ଅସ୍ତିତ୍ୱ ଗର୍ଭକୁ ନିକ୍ଷିପ୍ତ । ନଈ, ସମୟ ଓ ଜୀବନ ମଣିଷର ଅସ୍ତିତ୍ୱ । ସେଠି କୂଳ ନାହିଁ । ଅସ୍ତିତ୍ୱର ବାହାରକୁ ଆସିବ । ଅର୍ଥ ନିରର୍ଥକ ମୃତ୍ୟୁକୁ ଭେଟିବା, ନିରର୍ଥକ ଜୀବନର ପରିଣାମ ମୃତ୍ୟୁ ।

"କୂଳରେ ଆଉ ଅଛି କ'ଣ?
ଆ' ଡେଇଁଯିବା ପାଣିକି,
ବେଢଙ୍ଗ ହାୱାରେ ଖାଲି ପାଚିଲା ଡିମିରିଫଳ ପରି
ମୁଣ୍ଡମାନେ ଝୁଲୁଥିବା କେତେ ଦେଖୁଥିବୁ?"(୮)
(ନଈପହଁରା, ପୃ୨୭୧)

ତେଣୁ ସବୁଠି ଉଭଟତା, ନୈରାଶ୍ୟ ଓ ବିଫଳତାର ପ୍ରମାଣ । ଜୀବନ ପ୍ରତି ଏହି ଶ୍ଳେଷ ସୌଭାଗ୍ୟ ମିଶ୍ରଙ୍କ 'ନଈପହଁରା'ର ମୁଖ୍ୟ ସ୍ୱର ।

ଏହିପରି ଏକ ଏକ ନୈରାଶ୍ୟବାଦୀ ଚରିତ୍ର ହେଉଛନ୍ତି ଦୀପକ ମିଶ୍ରଙ୍କର 'ବଳରାମ ସୁଆର', 'ଶୁକ ବଢ଼େଇ', 'ରଘୁ ସାହାଣୀ' । ଏମାନେ ଯେମିତି ଯନ୍ତ୍ରଣାର ଜୀବନ୍ତ ରୂପ । 'ଶୁକ ବଢ଼େଇ' ଯନ୍ତ୍ରଣା ଦଗ୍ଧ ମଣିଷଟିଏ । ତା'ର ଅପ୍ରମିତ ଦୁଃଖ । ସେ ବୈଶ୍ୟକୂଳରେ ଜନ୍ମ । ତା'ର ସୁନାରୂପା ବ୍ୟବସାୟ ଅଛି । ସଂସାର ଥାଇ ବି ବିଧବା ବ୍ରାହ୍ମଣୀ ଗମନ କ୍ଷମାହୀନ ଭୟଙ୍କର ପାପ । ସେହି ପାପରୁ ସେ ଆଜି ମୁକ୍ତି ଚାହେଁ । କିନ୍ତୁ ମୁକ୍ତିର ସମ୍ଭାବନା କାହିଁ? ତେଣୁ ତାର ମୁକ୍ତିସନ୍ଧାନର ଅସମର୍ଥ ବ୍ୟାକୁଳତା ଭିତରେ ମଣିଷର ବିଷଣ୍ଣତାବୋଧ ସ୍ପଷ୍ଟ ହୋଇଉଠିଛି । ମୃତ୍ୟୁ ତାକୁ କଳଙ୍କି ପରି ଧୀରେ ଧୀରେ କୋରି ଖାଇଯାଇଛି । ତା' ଆଗରେ ତା' ପୃଥିବୀ ଧୀରେ ଧୀରେ ଉଜୁଡ଼ି ପଡୁଛି । ଜୀବନ ସଂଗ୍ରାମ ଭିତରେ କ୍ଳାନ୍ତ ମଣିଷଟିର ଭବିଷ୍ୟତ ବା କ'ଣ? କବିଙ୍କ ଭାଷାରେ –

"ଦୁଃଖ ଭୁଲିବାକୁ ଇଚ୍ଛା କଲେ ବି
ସେ ପୁଣି ନୂଆ ଦୁଃଖକୁ ଭେଟେ
ଦୁଃଖକୁ ଭୁଲିଲେ ସିନା ଅନ୍ୟ ନୂଆ ଦୁଃଖ ପାଇଁ
ଆମେ ପୁଣି ହୋଇବା ପ୍ରସ୍ତୁତ ।
ଦେଖୁଛୁ ତ ମୋ ପାଟିରୁ ଭକ୍‌ଭକ୍ ଆସୁଥିବା ରକ୍ତରେ
ଲଗାଇ ମୋର ଛୋଟ ନିହାଣଟି ମୁଁ କେମିତି
ଗଢୁଚିରେ ଦୁଃଖରେ ଆଉଟିପାଉଟି
ଏକ ସୁଖର ମଣିଷ ।"(୯)(ଅରଣା ମଇଁଷି, ପୃ.୧୫)

ବେଣୁଧର ରାଉତଙ୍କ କାବ୍ୟଭାବନାରେ ଆଧୁନିକ ଜୀବନର କ୍ଷୟିଷ୍ଣୁ ଅବବୋଧ, ଆଦର୍ଶହୀନ ଜୀବନ, ଚଳଣିର ରୂପାୟନ ଘଟିଛି । 'ପିଙ୍ଗଳାର ଛାତି', 'ପିଙ୍ଗଳାର ସୂର୍ଯ୍ୟ', 'କେଶବତୀ', 'କଳାମେଣ୍ଢା' ଆଦି କବିତା ମାଧମରେ ସାମ୍ପ୍ରତିକ ସମାଜ ଜୀବନର ଅନ୍ତଃସାରଶୂନ୍ୟତାକୁ ଦର୍ଶାଇଛନ୍ତି । 'ସୁନାସିଂହର ସ୍ୱପ୍ନ' କବିତାରେ ଭାରତୀୟ ସ୍ୱାଧୀନତାର ମୋହଭଙ୍ଗ ଜନିତ ନୈରାଶ୍ୟବୋଧକୁ ସୂଚେଇଛନ୍ତି ।

"ସ୍ୱପ୍ନ ଦେଖେ ସୁନାସିଂହ, ଘୋଟିଆସେ ସାଇଁ ସାଇଁ ଡାକି
ଲକ୍ଷ ଲକ୍ଷ ଶ୍ରାବଣର ଅମାରାତି, କଳା କଳା ଝଡ଼ର ଜମାଟ;
କାଳପକ୍ଷୀ-ପକ୍ଷାଘାତେ ଖଣ୍ଡ ଖଣ୍ଡ ଲୋଟିପଡ଼େ ନାଳନ୍ଦାର ଶିଖ
ଏ ଲୋରା ଓ ଅଜନ୍ତାର ନିଭିଯାଏ ଗୁହାଛବି ରଙ୍ଗର ବିଭୂତି ।
ଯକ୍ଷ ଦଂପତ୍ତିର ଶବ-ତୀବ୍ର ଗନ୍ଧ ସଂକ୍ରମଇ ମାଟିର ନିଶ୍ୱାସେ
ଅସ୍ୱସ୍ତିରେ ସୁନାସିଂହ ଦେହ ଭିଡ଼ି ଲେଉଟାଏ କଡ଼....
ଆହୁରି ଅସ୍ୱସ୍ତି ଲାଗେ, ଭାଙ୍ଗିଯାଏ ନିଦ ।"(୧୦)
(ପିଙ୍ଗଳାର ସୂର୍ଯ୍ୟ, ପୃ.୧୬)

'ପିଙ୍ଗଳା ବେଶ୍ୟା'ର ସମ୍ଭୋଗ ପାଇଁ ଉତ୍କଣ୍ଠା । ପିଙ୍ଗଳା ଅପେକ୍ଷା କରିଛି ଧନୀପୁରୁଷକୁ । ସୁବେଶିତ ଦେହ । ବଡ଼ ଉଚ୍ଚାଟିତ ମନ । ରଜନୀ ଅର୍ଦ୍ଧଭାଗ ଅତିକ୍ରାନ୍ତ । ଏବେବି ଆସି ପହଞ୍ଚିନାହାନ୍ତି ପ୍ରିୟତମ । ଦୁଃସହ କ୍ଳାନ୍ତି, ଅବସାଦ ଓ ନୈରାଶ୍ୟରେ ଭାଙ୍ଗିପଡ଼ିଛି ପିଙ୍ଗଳାର ତୃଷାର୍ତ୍ତ ଦେହ, ମନ ଓ ପ୍ରାଣ । ଏବେ ଏହି କ୍ଳାନ୍ତ, ଅବସାଦ ଓ ନୈରାଶ୍ୟରୁ ବୈରାଗ୍ୟ ଉଦୟର ସନ୍ଧିକ୍ଷଣ ଉପସ୍ଥିତ ।

"ଏ ନୀଳ ନିଶୀଥ ଯେହ୍ନେ ପ୍ରଜ୍ୱଳିତ ଅସଂଖ୍ୟ ତାରାରେ
ଏ ନୀଳ ନିଶୀଥ ଯେହ୍ନେ ନୀପିଡ଼ିତ
ଲେଲିହାନ କାମନା ଜ୍ୱାଳାରେ
× × × ×
ଏ ରାତିର ଆକାଶରେ ଏତେ ତାରା!
ଏତେ ରାତି! ଏତେ ନିର୍ଜନତା
ପିଙ୍ଗଳାରେ ଏତେ ଦେହ! ଏତେ ଜ୍ୱାଳା!
ଏତେ ଆତୁରତା!
ଆକାଶ ବି କେତେ ଶୂନ୍ୟ! କେତେ କଳା!
କେତେ ମୂର୍ତ୍ତିମନ୍ତ!
ପିଙ୍ଗଳା କ୍ଷୁଭିତ କେତେ! କ୍ଳାନ୍ତ କେତେ!
କେତେ ଗ୍ଲାନି, ଅଶ୍ରୁରେ ମଥିତ ।"(୧୧)
(ପିଙ୍ଗଳାର ସୂର୍ଯ୍ୟ, ପୃ.୧୧୫)

ବିଷାଦ ହେଉଛି ଭାନୁଜୀଙ୍କ କବିତାର ମୁଖ୍ୟ ସ୍ୱର । ସମକାଳର ବ୍ୟଥା-ବିଡ଼ମ୍ବନା ଓ ସାମାଜିକ ଅବକ୍ଷୟକୁ ପ୍ରକାଶ କରିବାକୁ ଯାଇ କବି ମିଥ୍, ଚିତ୍ରକଳ୍ପକୁ ଅବଲମ୍ବନ କରିଛନ୍ତି । ବଡ଼ ନିରାଶ୍ରୟ ଓ ଅନିଶ୍ଚିତ ଏ ଜୀବନ । ବିଡ଼ମ୍ବିତ ତା'ର ନିୟତି । ମନୁଷ୍ୟକୁ ତା'ର ପ୍ରବୃତ୍ତି ପତନର ପଥ ଆଡ଼କୁ ଟାଣିନିଏ । ଜୀବନର କ୍ଳାନ୍ତି ଓ ନୈରାଶ୍ୟବୋଧ ତାକୁ ବ୍ୟତିବ୍ୟସ୍ତ କରିଥାଏ ।

"ଏ ସହର କାଛଯାକ
ଜହ୍ନ ମାରେ ହଜାରେ ପୋଷ୍ଟର

ଜନତାର ଭିଡ଼ଠେଲି ଚନ୍ଦ୍ରଭାନୁ
ପଶେ ବେଶ୍ୟା ଘର ।"(୧୨)
(ବିଷାଦ ଏକ ଋତୁ, ପୃ.୪୧)

'ସାମାନ୍ୟ କଥନ' କବିତା ସଂକଳନର କାବ୍ୟନାୟକ ଏକ ବାଟବଣା ନିଃସଙ୍ଗ ବ୍ୟକ୍ତି । ତାର ଚାରିପାଖରେ ଶୂନ୍ୟତା । ତେଣୁ ସେ ଆଜି ନିଜେ ନିଜର ସ୍ଥିତିକୁ ଖୋଜୁଛି । ଜୀବନ ତାକୁ ଅଭିଶପ୍ତ ମନେ ହୋଇଛି । ଭୟାତୁରତା ଓ ପାପବୋଧ ଭିତରେ ସେ ବୁଡ଼ି ରହିଛି । କବି ସୌରୀନ୍ଦ୍ର ବାରିକ୍ ମହାଭାରତୀୟ ପୃଷ୍ଠଭୂମିକୁ ଲକ୍ଷ୍ୟ କରି ସାଂପ୍ରତିକ ମଣିଷର ବିକଳରୂପକୁ ସାର୍ଥକ ରୂପେ ଉପସ୍ଥାପିତ କରିଛନ୍ତି । ଏଠାରେ କୌରବ ଭ୍ରାତାମାନଙ୍କର ବିପର୍ଯ୍ୟସ୍ତ ପରିସ୍ଥିତିକୁ ଆଖିରେ ରଖି ଧୃତରାଷ୍ଟ୍ର ନିଜକୁ ଏକ ଦ୍ୱନ୍ଦ୍ୱ ଶଙ୍କୁଳ ପରିସ୍ଥିତି ମଧ୍ୟରେ କିପରି ଉପଲବ୍ଧି କରିଛି, ତାହାହିଁ କାବ୍ୟପୁରୁଷର ସ୍ୱର ।

"ହେ ସଂଜୟ! ଶକ୍ତି ଦିଅ ମୋତେ
ଧୈର୍ଯ୍ୟ ମୋତେ ଦିଅ
ବୃଦ୍ଧକାଳେ ଯେମିତି ମୁଁ ସହିନିଏ
ଧର୍ମର ଏ କ୍ରୁର ଆଶୀର୍ବାଦ ।"(୧୩)
(ସାମାନ୍ୟ କଥନ, ପୃ.୪୫)

ସେହିପରି ସ୍ୱାଧୀନତୋତ୍ତର କାଳର ଅବସାଦଗ୍ରସ୍ତ, ବିଷାଦ ଜର୍ଜରିତ ମଣିଷର ପ୍ରତିନିଧିତ୍ୱ କରନ୍ତି ରାଜା 'ହରିଶ୍ଚନ୍ଦ୍ର' । ସବୁ ଥାଇ ମଧ୍ୟ କିଛି ନ ଥିବାର ତୀବ୍ରଜ୍ୱଳନରେ ଦଗ୍ଧୀଭୂତ । ସମସ୍ତ ସ୍ୱପ୍ନ, ସମ୍ଭାବନା ଜାଣି କାଳର କରାଳରେ ଧୂଳିସାତ୍ ହୋଇଛି । ତେଣୁ ବିଷାଦବୋଧର ତତଲା କଡ଼େଇରେ ସେ ସିଝିବା ବ୍ୟତୀତ ଆଉ ବା କ'ଣ ହୋଇପାରିବେ ।

"ଚାରିପାଶେ ଏଇ ମୋର କଳାରାତି, ଗଭୀର ଶୂନ୍ୟତା
ମୁଁ ଏଠି ଏକାନ୍ତ ସତ୍ୟ, ଜଗୁଆଳ ହରିଶ୍ଚନ୍ଦ୍ର ରାଜା;
କମ୍ପିତ ଆକାଶ ମୋର ଗୁଣଗ୍ରାହୀ ଦାନଶୀଳ ନାମେ
ମୁଁ ତେଜିଚି ପ୍ରିୟତମା, ଶିଶୁ ପୁତ୍ର,
ସିଂହାସନ ଆପଣା ଖୁସିରେ ।"(୧୪)
(ଅସ୍ତଜହ୍ନର ଏଲିଜି, ପୃ.୧୩)

ଏହି କ୍ରମେ ଦେଖିଲେ ସ୍ୱାଧୀନତା ପରବର୍ତ୍ତୀ ସତୁରୀ ବର୍ଷ ଭିତରେ ଦେଶବାସୀ ଯାହା ଆଶା କରିଥିଲେ ତାହା ପାଇଲେ ନାହିଁ । ରାମରାଜ୍ୟ ହେଲା ବିଡ଼ମ୍ବିତ । ଧନୀ ହେଲା ଅଧିକ ଧନୀ, ଗରିବ ହେଲା ଅଧିକ ଗରିବ । ବେକାର ସଂଖ୍ୟା ବଢ଼ିବଢ଼ି ଚାଲିଲା । ସବୁଠି ଦେଖାଦେଲା ହିପୋକ୍ରାସି, ପ୍ରତାରଣା, ପ୍ରବଞ୍ଚନା । ସାରା ଦେଶଟା ଯେମିତି ପାଲଟି ଯାଇଛି ଅନ୍ଧମାନଙ୍କର ଦେଶ । ଏଠି ଦର୍ପଣ ଦେଖିବ କିଏ? କେହି ନାହିଁ । ଗୋଟାଏ ନୈରାଶ୍ୟ ଯେପରି ସର୍ବତ୍ର ପ୍ରକାଶ ପାଇଛି । ଏହି ନୈରାଶ୍ୟ ଯେପରି ମୁଠାଏ ଅନ୍ନପାଇଁ ସଂଘର୍ଷ କରୁଥିବା ମଣିଷର ଦେଖା ଦେଇଛି, ସେହିପରି ଦେଖାଦେଇଛି ଅର୍ଥର ପାହାଡ଼ ଉପରେ ବସିଥିବା ମଣିଷର । ଯେପରି ଗୋଲାମ ଦାସମାନଙ୍କର ଦେଖାଦେଇଛି, ସେହିପରି ଦେଖାଦେଇଛି ରାଜନେତାମାନଙ୍କର । ବ୍ୟକ୍ତି ଜୀବନରେ ନୈରାଶ୍ୟ, ପରିବାରରେ ନୈରାଶ୍ୟ, ସମାଜରେ ମଧ୍ୟ ନୈରାଶ୍ୟ, ଆଧୁନିକ କବିମାନଙ୍କର କବିତାରେ ଏହି ନୈରାଶ୍ୟର ସ୍ୱର ବହୁମୁଖୀ ।

**ସହାୟକ ଗ୍ରନ୍ଥସୂଚୀ**


୧. ରାଉତରାୟ, ସଚ୍ଚି : ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ, ପ୍ରକାଶକ – ଓଡ଼ିଶା ସାହିତ୍ୟ ଏକାଡ଼େମୀ, ନୂତନ ସଂସ୍କରଣ – ୨୦୧୬, ISBN – 81-7586-218-1

୨. ରାଉତରାୟ, ସଚ୍ଚି : ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ, ପ୍ରକାଶକ – ଓଡ଼ିଶା ସାହିତ୍ୟ ଏକାଡ଼େମୀ, ନୂତନ ସଂସ୍କରଣ – ୨୦୧୬, ISBN – 81-7586-218-1

୩. ମହାନ୍ତି, ଗୁରୁପ୍ରସାଦ : କବିତା ସମଗ୍ର, ଚତୁରଙ୍ଗ ପ୍ରକାଶନୀ, ଭୁବନେଶ୍ୱର-୯, ପ୍ରଥମ ପ୍ରକାଶ, ୧୯୯୫

୪. ରଥ, ରମାକାନ୍ତ : ସନ୍ଦିଗ୍ଧ ମୃଗୟା, ଲାର୍କ ବୁକ୍ସ, ଦ୍ୱିତୀୟ ପ୍ରକାଶ, ୧୯୮୫

୫. ରଥ, ରମାକାନ୍ତ : କେତେ ଦିନର, ତୃତୀୟ ସଂସ୍କରଣ, ଅଗ୍ରଦୂତ, କଟକ, ୧୯୮୯

୬. ମହାପାତ୍ର, ସୀତାକାନ୍ତ : କବିତା ସମଗ୍ର, ପ୍ରଥମ ଖଣ୍ଡ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ପ୍ରଥମ ପ୍ରକାଶ, ୨୦୦୧, ISBN – 81-740-386-5

୭. ମିଶ୍ର, ସୌଭାଗ୍ୟ : ସୌଭାଗ୍ୟ ମିଶ୍ରଙ୍କ କାବ୍ୟସମ୍ଭାର, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ପ୍ରଥମ ଖଣ୍ଡ, ପ୍ରଥମ ପ୍ରକାଶ – ୧୯୯୪

୮. ମିଶ୍ର, ସୌଭାଗ୍ୟ : ସୌଭାଗ୍ୟ ମିଶ୍ରଙ୍କ କାବ୍ୟସମ୍ଭାର, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ପ୍ରଥମ ଖଣ୍ଡ, ପ୍ରଥମ ପ୍ରକାଶ – ୧୯୯୪

୯. ମିଶ୍ର, ଦୀପକ : ସବୁ କବିତା (କାବ୍ୟପର୍ବ), ଦ୍ୱିତୀୟ ଖଣ୍ଡ, କାହାଣୀ ପ୍ରକାଶନ, କଲ୍ୟାଣୀ ନଗର, ପ୍ରଥମ ପ୍ରକାଶ, ୨୦୦୭

୧୦. ରାଉତ, ବେଣୁଧର : ପିଙ୍ଗଳାର ସୂର୍ଯ୍ୟ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ପ୍ରଥମ ପ୍ରକାଶ, ୧୯୬୭

୧୧. ରାଉତ, ବେଣୁଧର : ପିଙ୍ଗଳାର ସୂର୍ଯ୍ୟ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ପ୍ରଥମ ପ୍ରକାଶ, ୧୯୬୭

୧୨. ରାଓ, ଭାନୁଜୀ : ବିଷାଦ ଏକ ଋତୁ, ଲାର୍କ ବୁକ୍ସ, ପ୍ରଥମ ପ୍ରକାଶ, ୧୯୭୩

୧୩. ବାରିକ, ସୌରୀନ୍ଦ୍ର : ସାମାନ୍ୟ କଥନ, ଅଗ୍ରଦୂତ, କଟକ, ପ୍ରଥମ ପ୍ରକାଶ, ୧୯୭୫

